

# ଉତ୍କଳ-ବ୍ରାହ୍ମଣ-ସମିତିର ୨ଷ୍ଠ ବାର୍ଷିକ ବିବରଣ ।

ସ୍ୱସ୍ତି ପ୍ରଜାଭ୍ୟଃ, ପରିପାଳୟନ୍ତୁ
ନ୍ୟାଯ୍ୟେନ ମାର୍ଗେଣ ମହୀଂ ମହୀଶାଃ,
ଗୋ ବ୍ରାହ୍ମଣେଭ୍ୟଃ ଶୁଭମସ୍ତୁ ନିତ୍ୟଂ,
ଲୋକାଃ ସମସ୍ତାଃ ସୁଖିନୋ ଭବନ୍ତୁ ॥

Printed by G. N. Mishra
at the Jagannath Press
PURI.
1906

ଶ୍ରୀ କାଶୀନାଥ ମହାପାତ୍ର
ସମ୍ପାଦକ

# ଉତ୍କଳବ୍ରାହ୍ମଣସମିତିର ନବମ ବାର୍ଷିକ ବିବରଣ ।

## ସନ ୧୯୦୬ ମସିହା ।

---

**ଅବତରଣିକା—।**

ଗତ୍ ଗତ୍ ଏକବର୍ଷ ଗତ ହୋଇଗଲା, ଉତ୍କଳବ୍ରାହ୍ମଣସମିତିର ଅଷ୍ଟମବାର୍ଷିକ ଅଧିବେଶନ କାଳ ସମାହୃତ ହୋଇଥିବା ପରି ଅମ୍ଭମାନଙ୍କୁ ବୋଧ ହେଉଅଛି । ଏହି ଏକବର୍ଷମଧ୍ୟରେ କାହା ଭାଗ୍ୟରେ କେତେ କେତେ ପରିବର୍ତ୍ତନ ଘଟିଯାଇଅଛି; କେତେ ଦେଶ ଓ କେତେ ଜାତିର ଅବସ୍ଥାରେ କଳ୍ପନାତୀତ ବିପର୍ଯ୍ୟୟ ଘଟିଅଛି । ଏହା ସଂସାରର ଧର୍ମ । ଅମ୍ଭମାନଙ୍କର କ୍ଷୁଦ୍ର ଉଦ୍ୟମ ଏହି ବ୍ରାହ୍ମଣସମିତିର ବିଶେଷ କୌଣସି ଅଭାବନୀୟ ଅବସ୍ଥାନ୍ତର ଉପସ୍ଥିତ ହୋଇ ନ ଥିଲେହେଁ ଏହି ପ୍ରାକୃତିକ ବିଧାନ ଅନୁସାରେ ସର୍ବମଙ୍ଗଳଦାତା ବିଧାତାଙ୍କର କଲ୍ୟାଣମୟ ଆଶୀର୍ବାଦବଳରୁ ଅମ୍ଭେମାନେ ଯତ୍କିଞ୍ଚିତ ଅଗ୍ରସର ହେଉଅଛୁଁ । ବର୍ଷର ପ୍ରାରମ୍ଭରେ ହୃଦୟରେ ନବୀନ ଆଶା ପୋଷଣ କରି ଅମ୍ଭେମାନେ ଯେ ସମସ୍ତ କଳ୍ପନାରେ କାର୍ଯ୍ୟାରମ୍ଭ କରିଥିଲୁଁ ତାହା କେବଳ ଆଂଶିକ କାର୍ଯ୍ୟରେ ପରିଣତ ହୋଇଅଛି । ଯାହା ହେଉ ନିଜର ବଳଗତ ପରିଶ୍ରମ ଓ ଯତ୍ନର ଫଳସ୍ୱରୂପ ସେହି ସବୁ କାର୍ଯ୍ୟଗୁଡ଼ିକ ଆଜି ଆପଣମାନଙ୍କ ନିକଟରେ ଅଗତ କରୁଅଛୁଁ ।

ଗତବର୍ଷ ଅମ୍ଭେମାନେ ଅଷ୍ଟମବାର୍ଷିକ ବିବରଣରେ ସମିତିର [illegible] ଉଦ୍ଦେଶ୍ୟ ପ୍ରଭୃତି ନାନା ବିଷୟର ବିଶଦ ବର୍ଣ୍ଣନା କରିଥିଲୁ । [illegible]ମାନଙ୍କର ସ୍ମରଣ ଅଛି ଉକ୍ତ ବିବରଣ ଉପରେ ପ୍ରତିବାଦୀ ପତ୍ରିକା [illegible] [illegible] ସଙ୍ଗେ କହିଥିଲେ "ବାର୍ଷିକ ବିବରଣଟି କେତେ ଅନାବଶ୍ୟକ ରୂପେ [illegible] ହୋଇଅଛି, ବର୍ଷର କାର୍ଯ୍ୟ ଓ ଆୟବ୍ୟୟ ସଂକ୍ଷେପରେ ବାର୍ଷିକ

ବିବରଣରେ ପ୍ରକାଶ ହେବା ଯଥେଷ୍ଟ ଏବଂ ତହିଁରେ ସମସ୍ତ ଓ ବ୍ୟୟ
ମାତାଗୃହ ରକ୍ଷା ହେବ ।" ଆମ୍ଭେମାନେ ଏହି ମନ୍ତବ୍ୟକୁ ଯଥା
ମଣି ସଭାବରେ ଗ୍ରହଣ କରୁଅଛୁ, କିନ୍ତୁ ଗତବର୍ଷର ବିବରଣ ସେ
ପାର୍ଯ୍ୟ ହେବା ନାନା କାରଣରୁ ଆବଶ୍ୟକ ବୋଧ କରୁଥିଲୁଁ । ତା
ବ୍ରାହ୍ମଣସମିତିର ପ୍ରଥମ ପାଞ୍ଚବାର୍ଷିକ ସଂକ୍ଷିପ୍ତ ଇତିହାସରୂପେ ଲେଖି
ହୋଇଥିବ । ଯା ... ଏବର୍ଷ ଆମ୍ଭେମାନେ ସମିତିଙ୍କର ପ
ମର୍ଶ ମତେ ସାଧାରଣପଦ୍ଧତି ଅବଲମ୍ବନ କରି ସଂକ୍ଷେପରେ କ୍ରି
ଶେଷ କରିବୁଁ ।

ସନ ୧୮୯୯ ମସିହା ଅକ୍ଟୋବର ମାସ ତା ୧୪ ରଖ ଗୋ
ପୂରଣୀପୂଜାଦିବସ । ସେହି ଦିନ ବ୍ରାହ୍ମଣସମିତିର ପ୍ରଥମ ସୂଚନା ଏ
ଉକ୍ତ ବର୍ଷର ଡିସମ୍ବର ମାସର ତା ୨୮ ରଖ ଏହାର ଜନ୍ମଦିବସ
ସୁତରାଂ ଚଳନ୍ତବର୍ଷର ପ୍ରାରମ୍ଭରୁ କରୁଣାନିଧାନ ପରମେଶ୍ୱରଙ୍କ ଅ
ଗ୍ରହରୁ ଏହି ବ୍ରାହ୍ମଣସମିତି ଶୁଭ ମୁହୂର୍ତ୍ତରେ ୬ଷ୍ଠ ବର୍ଷ ଅତିକ୍ରମ
୭ମ ବର୍ଷରେ ପଦାର୍ପଣ କରିଅଛି ।

ଉଦ୍ଦେଶ୍ୟ—

ଆମ୍ଭେମାନେ ଗତବର୍ଷ ବାର୍ଷିକ ବିବରଣରେ ସମିତିର ଉଦ୍ଦେ
ପ୍ରକାଶ କରିଥିଲୁଁ । ଏଠାରେ ତଦ୍ବିଷୟରେ ଆଉ ଅଧିକ ନ
ଆମ୍ଭମାନଙ୍କର ଜନୈକ ବନ୍ଧୁ ସମିତିର ଅନ୍ୟତମ ସଭ୍ୟ
ବିଶେଷ ଅଧିବେଶନରେ ଯାହା କହିଅଛନ୍ତି ତାହାଠାରୁ ଆଉ ଅ
ତର ସ୍ପଷ୍ଟରୂପେ ପ୍ରକାଶ କରିବାର ବିଶେଷ ପ୍ରୟାସ ନ କରି
ନିମ୍ନରେ ଅବିକଳ ଉଦ୍ଧାର କଲୁଁ ।

"ସମ୍ପ୍ରତି ଜଗର ନାମ ଉତ୍କଳ ବ୍ରାହ୍ମଣସମିତି ରଖିଥିବା
ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିଶାଳ ପ୍ରାକୃତିକ ଉତ୍କଳ
ବ୍ରାହ୍ମଣସମାଜର ଶିକ୍ଷା ସଭ୍ୟତା ସଂସ୍କାର ଓ ପାରତ୍ରି
ଦ୍ଧକାର କଲ୍ୟାଣତତ୍ତ୍ୱ ନିମ୍ନବିଧାନ ଏହାର ପ୍ରଧାନ ଲକ୍ଷ୍ୟ ।

ବହୁ ଅର୍ଥ ସଙ୍ଗ୍ରହ କରି କେତେକ ଜଣ ନିଃସ୍ୱ ବ୍ରାହ୍ମଣସନ୍ତାନଙ୍କର ଶିକ୍ଷା ବ୍ୟବସ୍ଥା ( ଯାହା ତ ସମିତି ଥିଲା ପୂର୍ବରୁ କରି ଆସୁଅଛନ୍ତି ) ଏଥିର ଉଦ୍ଦେଶ ନୁହେ, ତାହା ପ୍ରଥମକଳ୍ପିତ ମୂଳ ଉଦ୍ଦେଶ୍ୟର ତୁଳନାରେ ଏହା ଏକ କଳ୍ପନାମାତ୍ର ନୁହେ, ତେବେ ବର୍ତ୍ତମାନ ଦେଖାଯାଉଅଛି ଯେ, ଉତ୍କଳର ଅନ୍ୟାନ୍ୟ ସ୍ଥାନରେ ଅର୍ଥାତ୍ ଅନ୍ୟାନ୍ୟ ନଗରରେ, ସହରମାନରେ, ଏମନ୍ତ କି ଅଜ୍ଞାତ ପଲ୍ଲୀଗ୍ରାମର ବ୍ରାହ୍ମଣମାନଙ୍କ ନିକଟରେ ଏ ସମିତିର କାର୍ଯ୍ୟକଳାପ ଉପସ୍ଥାପିତ ହେବା ଉଚିତ ।

* * * * * * * *

ସମିତିର ଉଦ୍ଦେଶ୍ୟ ସମ୍ବନ୍ଧରେ ... ...

ମୁଁ ମୋର ମତ ଅନ୍ୟାନ୍ୟ ଅନେକ ଘଟଣାରେ ଯାହା ବ୍ୟକ୍ତ କରିଅଛି ଆଜି ମଧ ତାହାହିଁ କହୁଅଛି ଯେ, ଏ ସମିତିର ଶକ୍ତି ଯେତେ ସାମାନ୍ୟ ହେଉ ପଛକେ ଏବଂ ଏହାର କାର୍ଯ୍ୟକ୍ଷେତ୍ର ଆଜି ପୂର୍ବା ଯେତେ ସୀମାବଦ୍ଧ ହେଉ ପଛକେ ଭାରତର ଚତୁର୍ଦ୍ଦିଗରେ ଯେ ଜାତୀୟ ଭାବର ଜାଗରଣ ଏବଂ ସମ୍ପ୍ରସାରଣ ଘଟିଅଛି ଏହା ସେହି ଜାତୀୟଭାବର କ୍ଷୀଣ ଆଂଶିକ ପ୍ରକାଶମାତ୍ର । ଏହି ଜାତୀୟଭାବ ନାନାସ୍ଥାନରେ ନାନା ଆକାରରେ ବିଭାସିତ ହେଉଅଛି ଏବଂ ହେବ । ଭାରତ ଧର୍ମ ମହା-ମଣ୍ଡଳି ବୋଲନ୍ତୁ, ରାମକୃଷ୍ଣ ବା ଦୟାନନ୍ଦମିସନ ବୋଲନ୍ତୁ, ବ୍ରାହ୍ମସମାଜ ବୋଲନ୍ତୁ ବା ଅନ୍ୟ କୌଣସି ଧର୍ମସଂପ୍ରଦାୟ କଥା ବୋଲନ୍ତୁ ସେ ସମସ୍ତ ସେହି ଜାତୀୟ ଭାବର ଧର୍ମ ଅଙ୍ଗର ପ୍ରକାଶ । ଜାତୀୟମହାସମିତି ଠାରୁ ଆରମ୍ଭ କରି ପ୍ରତ୍ୟେକ ଜିଲାର ସାଧାରଣ ସ୍ୱାଧୀନ ସଂଘ ସକଳ ସେହି ଜାତୀୟଭାବ ରାଜନୈତିକ ଅଂଶର ପ୍ରକାଶ ଛଡ଼ା ଅନ୍ୟ କିଛି ନୁହେ । ଶିଳ୍ପବିଜ୍ଞାନସମିତି, ଉତ୍କଳସମ୍ମିଳନୀ ପ୍ରଭୃତି ଦଳଗତ ଚେଷ୍ଟା ସମସ୍ତେ ପରସ୍ପରର ପ୍ରତିଦ୍ୱନ୍ଦ୍ୱୀପରି ବୋଧ ହେଉଥିଲେ ହେଁ ସେହି ସମସ୍ତ ସେହି ଜାତୀୟଜୀବନର ଶିଳ୍ପବାଣିଜ୍ୟାଂଶର ଭିନ୍ନ ଭିନ୍ନ ଆକାରରେ ପ୍ରକାଶମାତ୍ର । ଏହି ପରି କି ଶିକ୍ଷା, କି ଶିଳ୍ପ କି ସାହିତ୍ୟ

ବ ସ୍ୱଜାତି, ଓ ଧର୍ମ୍ମଜାତି ଉନ୍ନତ୍ୟର୍ଥ ନାନାବିଧ ଆନ୍ଦୋଳନ, ଯାହା ଆଜି ଭାରତର ନାନା ସ୍ଥାନରେ ଲାଗିଅଛି, ଭାରତମହାସମିତି ବା ଧର୍ମ୍ମମହାମଣ୍ଡଳ ସଭାଠାରୁ ଆରମ୍ଭ କରି ପଲ୍ଲୀଗ୍ରାମର ସାମାନ୍ୟ ଅପ ପ୍ରାଇମେରି ବା ନିମ୍ନପ୍ରାଇମେରି ବିଦ୍ୟାଳୟସ୍ଥ ବାଳକମାନଙ୍କର କ୍ଷୁଦ୍ରସମାଜ ପର୍ଯ୍ୟନ୍ତ ସମସ୍ତ ଦଳଗତ ଚେଷ୍ଟା ଏବଂ ସମବେତ ଉଦ୍ୟମ କ୍ଷୁଦ୍ର ଏବଂ ବୃହତ୍ ଶାଖାନଦୀର ତୁଲ୍ୟ ସେହି ଭାରତମହା କଲ୍ୟାଣ ସମୁଦ୍ର ଆଡକୁ ଅନବରତ ପ୍ରଧାବିତ ହେଉଅଛି । ମୋର ବିଶ୍ୱାସ ଏହି କ୍ଷୁଦ୍ର ବ୍ରାହ୍ମଣ ସମିତି ଏହାର କ୍ଷୀଣ ଶକ୍ତି କ୍ଷୀଣ ଧାରାରେ ସେହି ବିରାଟ ମହାଶକ୍ତିର ପରିପୁଷ୍ଟିରେ ନିୟୋଗ କରୁଅଛି ଏବଂ କରିବା ଉଚିତ । ”

ଖେଦ ——

ଗତ ବର୍ଷ ବିବରଣରେ ପ୍ରକାଶିତ ହୋଇଥିଲା ଯେ ଉତ୍କଳ-ବ୍ରାହ୍ମଣସମିତି ପୁରୀରେ ସ୍ଥାପିତ ହୋଇଥିଲେହେଁ ଏହା ଏହି କ୍ଷୁଦ୍ରନଗର ବା ଜିଲାରେ ଆବଦ୍ଧ ନୁହେ । ସମସ୍ତ ପ୍ରାକୃତିକ ଉତ୍କଳ ଏହାର କାର୍ଯ୍ୟ କ୍ଷେତ୍ର । ଏହି ଅତି ଉଚ୍ଚ ଏବଂ ପ୍ରଶସ୍ତ ଆଦର୍ଶ ସମ୍ମୁଖରେ ଥିଲେହେଁ ଶକ୍ତିର କ୍ଷୀଣତା ନିବନ୍ଧନ ଆଜି ସୁଦ୍ଧା ଆମ୍ଭେମାନେ ଓଡ଼ିଶାର ଅନ୍ୟାନ୍ୟ ସ୍ଥାନରେ ସମିତିର କୌଣସି ବିଶେଷ କାର୍ଯ୍ୟ କରିପାରିନାହୁଁ, ଯଦ୍ୟପି ଆମ୍ଭେମାନେ କିଛି କରି ନ ପାରିଲେ ସର୍ବ୍ବ ଭଗବତ୍ କୃପାରୁ ଗତ ଏକ ବର୍ଷ ମଧ୍ୟରେ ଓଡ଼ିଶାର ନାନାସ୍ଥାନରେ କେତେଗୁଡ଼ିଏ ସ୍ୱତନ୍ତ୍ର ବ୍ରାହ୍ମଣସମିତି ସ୍ଥାପିତ ହୋଇଅଛି । ଆମ୍ଭେମାନେ ଯେତେ ଦୂର ଜାଣୁଁ ସେ ସମସ୍ତ ସମିତିର ଉଦ୍ଦେଶ୍ୟ ଏହି ଉତ୍କଳବ୍ରାହ୍ମଣସମିତିର ଉଦ୍ଦେଶ୍ୟଠାରୁ କିଛି ମାତ୍ର ଭିନ୍ନ ନୁହେ ସମସ୍ତ ସମିତିଙ୍କ ସହିତ ନ ହେଲେହେଁ ଏହି ସମିତିମାନଙ୍କ ମଧ୍ୟରୁ ଅନେକଙ୍କ ସଙ୍ଗରେ ପତ୍ର ଆଦାନପ୍ରଦାନ ଦ୍ୱାରା ଏହାର ଐକ୍ୟ ସମ୍ବନ୍ଧ ସଂସ୍ଥାପିତ ହୋଇଅଛି । ଯାହା ହେଉ ଏ ସମସ୍ତ ସମାନ ଧର୍ମ୍ମ ଓ ସମାନ ଉଦ୍ଦେଶ୍ୟରେ ସ୍ଥାପିତ ହୋଇଥିବାରୁ ମୁଖ୍ୟଭାବରେ ଦେଖିଲେ ତା

ଗୌଣଭାବରେ ହେଉ ଏହି ଉତ୍କଳବ୍ରାହ୍ମଣସମିତିର ମୌଳିକ ଉଦ୍ଦେଶ୍ୟ କ୍ରମେ ଉତ୍କଳ ବ୍ୟାପୀ ହେଉଅଛି ଏହା ଆମ୍ଭମାନଙ୍କ ପକ୍ଷରେ ପରମ ଆହ୍ଲାଦ ଓ ଆଶାର ବିଷୟ । ଆଶା କରୁଁ ଏ ସମିତିମାନ ଉତ୍କଳ-ବ୍ରାହ୍ମଣସମିତି ସଙ୍ଗେ ଅଚିରେ ସମ୍ବନ୍ଧ ସଂସ୍ଥାପନ କରି ଭ୍ରାତୃଭାବରେ ପ୍ରେମପାଶରେ ପରସ୍ପର ଆବଦ୍ଧ ରହି ଦୃଢ଼ ଏବଂ ଉପଲବ୍ଧ ଶକ୍ତିଦ୍ୱାରାରେ ସେହି ଏକ ଉଦ୍ଦେଶ୍ୟ ସମସ୍ତ ଉତ୍କଳବ୍ରାହ୍ମଣସମାଜର କଲ୍ୟାଣ ସାଧନରେ ଅଗ୍ରସର ହେବେ । ଏହି ନବ ସ୍ଥାପିତ ସମିତି-ମାନଙ୍କ ମଧ୍ୟରୁ ବାଲେଶ୍ୱର, ତାଳଚେର, ଅନୁଗୁଳ, ଖଲ୍ଲିକୋଟର, ବ୍ରାହ୍ମଣସମିତିମାନଙ୍କ ଉତ୍ସାହ ଓ ଯତ୍ନ ଅତ୍ୟନ୍ତ ପ୍ରଶଂସନୀୟ । ତହିଁର ସାରସ୍ୱତ ସମିତି ଧର୍ମ ଓ ଜ୍ଞାନ ବିସ୍ତାରରେ ଶକ୍ତି ନିଯୋଜିତ କରିଥିବା ବଡ ସୁଖର ବିଷୟ ଅଟେ । ଏତଦ୍ବ୍ୟତୀତ ବାମଣ୍ଡା, ପାରଳା ପ୍ରଭୃତି ସ୍ଥାନରେ ସଂଗଠିତ ସମିତିମାନ ଯଥାଶକ୍ତି କାର୍ଯ୍ୟ କରି ଏହି ଜାତୀୟ କଲ୍ୟାଣ ସାଧନରେ ଯୋଗ ଦେଉଅଛନ୍ତି । ଆଜି ନବ ବର୍ଷରେ ବ୍ରାହ୍ମଣସମିତି ନିଜର ଆନ୍ତରିକ ସ୍ନେହ ଆଦର ଅର୍ପଣ କରି ଏହି ସମିତିମାନଙ୍କୁ ପ୍ରୀତିପୂର୍ବକ ଆଲିଙ୍ଗନ କରୁଅଛି । ଯେଉଁ ସମସ୍ତ ସଦାଶୟ ବ୍ୟକ୍ତିମାନଙ୍କ ଆନ୍ତରିକ ଚେଷ୍ଟାରେ ଏହି ସମିତିମାନ ସ୍ଥାପିତ ହୋଇଅଛି ସେମାନେ ଆମ୍ଭମାନଙ୍କର ପ୍ରକୃତ ଭକ୍ତିଭାଜନ । ବିଶେଷତଃ ପ୍ରଜାବତ୍ସଳ ତାଳଚେର ଏବଂ ଖଲ୍ଲିକୋଟ-ଅଠଗଡ଼ର ନରପତିଦ୍ୱୟ ନିଜ ରାଜ୍ୟରେ ବ୍ରାହ୍ମଣମାନଙ୍କ ଉନ୍ନତିକଳ୍ପେ ସମିତି ସ୍ଥାପନ କରି ଭୂପୋଚିତ ସ୍ୱଧର୍ମର ପରିଚୟ ଦେଇଥିବାରୁ ଆମ୍ଭେମାନେ ଆଜି ଏହି ସମ୍ମିଳନୀରେ ଉକ୍ତ ପ୍ରଖ୍ୟାତନାମା ନରପତିଦ୍ୱୟଙ୍କୁ ସମ୍ମାନରେ ଆନ୍ତରିକ ଆଶୀର୍ବାଦ ଧନ୍ୟବାଦ ଅର୍ପଣ କରୁଅଛୁଁ । ଆଶା କରୁଁ ଅନ୍ୟାନ୍ୟ ନରପତିମାନେ ନିଜ ନିଜ ରାଜ୍ୟରେ ଏମାନଙ୍କ ପଥ ଅନୁସରଣ କଲେ ଅନୁନ୍ନତ ବ୍ରାହ୍ମଣସମାଜର ବହୁ ଉନ୍ନତି ସାଧିତ ହେବ ।

ସାଧାରଣମତ —

ଏ ସମିତ ଦଳକୁ ଏକ ଉତ୍କଳରେ ସାଧାରଣଙ୍କର ମନୋଯୋଗ ଆକର୍ଷଣ କରୁଥିବା ବଡ ଆନନ୍ଦର ବିଷୟ । ଏ ସମ୍ବନ୍ଧରେ ଉତ୍କଳର ସମ୍ବାଦପତ୍ରମାନ ବିଶେଷ ସହାୟ ହୋଇ ଆମ୍ଭମାନଙ୍କର କୃତଜ୍ଞତା ଭାଜନ ହୋଇଅଛନ୍ତି । ଗତ ବର୍ଷ ବିବରଣପାଠରେ ଉତ୍କଳର ପ୍ରାୟ ସମସ୍ତ ଲବ୍ଧପ୍ରତିଷ୍ଠ ସମ୍ବାଦପତ୍ର ଆମ୍ଭମାନଙ୍କ କାର୍ଯ୍ୟକଳାପ ଗ୍ରହଣ ଏବଂ ଅନୁମୋଦନ କରି ଏକବାକ୍ୟରେ ସାଧାରଣଙ୍କ ସାହାଯ୍ୟ ଓ ସହାନୁଭୂତି ପ୍ରାର୍ଥନା କରିଥିଲେ । କୃତଜ୍ଞତାର ଚିହ୍ନସ୍ୱରୂପ ସେମାନଙ୍କ ମଧ୍ୟରୁ କେତେକ ପତ୍ରିକାଙ୍କର ମତ ଅଂଶିକ ଏଠାରେ ଉଦ୍ଧୃତ ହେଲା ।

ସମ୍ବଲପୁର ହିତୈଷିଣୀ ଲେଖିଅଛନ୍ତି, "ପୁରୀରେ ସ୍ଥାପିତ ଉତ୍କଳ ବ୍ରାହ୍ମଣସମିତିର ୬ମ ବାର୍ଷିକ ରିପୋର୍ଟ ପାଠକରି ଆମ୍ଭେମାନେ ବଡ଼ ଆନନ୍ଦିତ ହୋଇ-ଅଛୁଁ । ତହିଁରୁ ପ୍ରକାଶ ଯେ ସମିତିର ଅବସ୍ଥା ଓ କାର୍ଯ୍ୟ କ୍ରମଶଃ ଅଗ୍ରସର ହେଉଅଛି ଏବଂ ଜନସାଧାରଣଙ୍କର ଶ୍ରଦ୍ଧା ଓ ସହାନୁଭୂତି ବଢିବାରେ ଅଛି ।" * * * * * * * *

ପ୍ରଜାବନ୍ଧୁ ଲେଖିଅଛନ୍ତି, "ଅବସ୍ଥା ବିବେଚନାରେ ସମିତିର ୬ମ ବର୍ଷର କାର୍ଯ୍ୟ ବିଶେଷ ଆଶାପ୍ରଦ ଏବଂ ସନ୍ତୋଷଜନକ ହୋଇଅଛି ।"

ସମିତି ବ୍ରାହ୍ମଣବାଳକମାନଙ୍କର ଚରିତ୍ର ରକ୍ଷା ଓ ଶିକ୍ଷା ଗ୍ରହଣ ** ସୁବିଧା କରିଦେବା ଏବଂ ସାମାଜିକ ଦୋଷ ସମୂହ ଦୂରକରିବା ସକାଶେ ସାଧ୍ୟମତ ଚେଷ୍ଟା କରି ଉତ୍କଳର ଅନ୍ୟାନ୍ୟ ସମିତିମାନଙ୍କ ପକ୍ଷରେ ଆଦର୍ଶସ୍ଥାନୀୟ ହୋଇଅଛି । ଏହି ସମିତିର ବିଶେଷତ୍ୱ ମନ୍ତ୍ରୀ ଭିଆ । * * * * * * * * * *

ଘରଘୋଷର ଗୃହସଂଖ୍ୟା ବୃଦ୍ଧିକରିବା ବର୍ତ୍ତମାନ ନିତାନ୍ତ ଆବଶ୍ୟକ ହୋଇଅଛି । ଅତଏବ ଆମ୍ଭମାନଙ୍କର ପରୋପକାରପ୍ରିୟ ପାଠକବର୍ଗ ଏଥିପ୍ରତି ଦୃଷ୍ଟିପାତ କରି ସାହାଯ୍ୟ କରି ଧନ୍ୟବାଦର ପାତ୍ର ହେବେ ।

ଓଡ଼ିଆ ଓ ନବସଂବାଦ ଲେଖିଅଛନ୍ତି ଯେ, "ପୁରୀର ବ୍ରାହ୍ମଣସମିତିର କାର୍ଯ୍ୟ ଦେଖି ଅତ୍ୟନ୍ତ ପ୍ରୀତ ହୋଇଅଛୁଁ। ଉତ୍ସାହ ପାଇଲେ ସମିତିଦ୍ୱାରା ଅନେକ ଅଶେଷ ଫଳ ଲାଭ ହୋଇ ପାରିବ। ବ୍ରାହ୍ମଣହିଁ ହିନ୍ଦୁସମାଜର ପ୍ରାଣ। ସେମାନଙ୍କର ସୁଶିକ୍ଷା, ଉନ୍ନତି ଲାଭ କରିପାରିଲେ ସମାଜର ଅଶେଷ କଲ୍ୟାଣ ସାଧିତ ହେବ। ବ୍ରାହ୍ମଣଙ୍କ ସ୍ୱାର୍ଥ ହିନ୍ଦୁମାତ୍ରଙ୍କର ଯତ୍ନଶୀଳ ହେବା ଉଚିତ। ପୁରୀର ଉକ୍ତ ସମିତିର ଉଦ୍ୟୋକ୍ତା-ମାନଙ୍କର ଏ ବିଷୟରେ ଯତ୍ନ ଦେଖି ଆମ୍ଭେମାନେ ଆନନ୍ଦିତ ହୋଇ-ଅଛୁଁ। ଉତ୍କଳର ସର୍ବତ୍ର ବ୍ରାହ୍ମଣଜାତିର ଉନ୍ନତି ଦେଖିବା ହିନ୍ଦୁମାତ୍ର-ଙ୍କରହିଁ ଆକାଙ୍କ୍ଷଣୀୟ ହେବା ଯେ ଏକାନ୍ତ ଉଚିତ ଏକଥା ବୋଲିବା ବାହୁଲ୍ୟ। ଉକ୍ତ ସମିତି ଗୃହ-ବାସର ସଂଖ୍ୟାବୃଦ୍ଧି କରିବା ନିମନ୍ତେ ସାଧାରଣଙ୍କ ନିକଟରେ ସାହାଯ୍ୟ ପ୍ରାର୍ଥନା ଜଣାଇଅଛନ୍ତି। ଆମ୍ଭେମାନେ ଆଶା କରୁଁ ସମର୍ଥାନୁସାରେ ଏଥିରେ ସାହାଯ୍ୟ ଦାନ କରିବାକୁ କେହି କୁଣ୍ଠିତ ହେବେ ନାହିଁ। "

ଗଞ୍ଜାମଗୁଣଦର୍ପଣ ଲେଖିଅଛନ୍ତି ଯେ, "ସମିତିର ଉଦ୍ଦେଶ୍ୟଟି ଯେପରି ଧର୍ମକାରକ ସେପରି ଦେଶହିତକର ଥିବାସ୍ଥଳେ ସମସ୍ତ ଶ୍ରେଣୀର ଲୋକେ ମଧ୍ୟ ଏଥି ସକାଶେ ଧନ ଦାନକରିବା ଅସଂଗତ ମନେ କରିବେ ନାହିଁ ବୋଲି ଆମ୍ଭମାନଙ୍କର ପ୍ରଗାଢ଼ ବିଶ୍ୱାସ। "

ଉତ୍କଳସାହିତ୍ୟ ଲେଖିଅଛନ୍ତି, "ସମିତି ସାମ୍ପ୍ରଦାୟିକ ଭିତ୍ତି ଉପରେ ପ୍ରତିଷ୍ଠିତ ହୋଇଲେହେଁ ସକଳ ବିଷୟରେ ଉଦାର ନୀତିମାର୍ଗ ଅବଲମ୍ବନ କରି ଦିନକୁ ଦିନ ଉନ୍ନତିମାର୍ଗରେ ଅଗ୍ରସର ହେଉଥିବାର ଦେଖି ଆମ୍ଭେମାନେ ଆନନ୍ଦିତ ହୋଇଅଛୁଁ। * * * * *

ମୁଷ୍ଟିଭିକ୍ଷାଦ୍ୱାରା ଶତାଧିକ ଟଙ୍କା ଆୟ କରିବା ସମିତିର ପରିଚାଳକ ମାନଙ୍କ ପକ୍ଷରେ ସାମାନ୍ୟ ପ୍ରଶଂସାର କଥା ନୁହେ। ଶିକ୍ଷା ସକଳ ଉନ୍ନତିର ମୂଳ ଏବଂ ଜୀବନ ପଥରେ ପ୍ରଧାନ ସମ୍ବଳ। ସମିତି ସ୍ୱସମ୍ପ୍ରଦାୟର ବାଳକମାନଙ୍କ ଶିକ୍ଷା ପ୍ରତି ସମଧିକ ମନୋଯୋଗ ପ୍ରଦାନ କରି

ସୁବିବେଚନାର କାର୍ଯ୍ୟ କରିଅଛନ୍ତି । ଆମ୍ଭେମାନେ ସର୍ବାନ୍ତଃକରଣରେ ସମ୍ମିଳନୀର ମଙ୍ଗଳ କାମନା କରୁଅଛୁଁ ।” * * * * *

ଉତ୍କଳବାସୀ ଲେଖିଅଛନ୍ତି, “ବ୍ରାହ୍ମଣ ସମାଜର ନେତା । ସମାଜୋନ୍ନତି ସେମାନଙ୍କ ମୁଖ୍ୟ ଉଦ୍ଦେଶ୍ୟ । ଏହି ବ୍ରାହ୍ମଣସମ୍ମିଳନୀ ଉତ୍କଳୀୟ ବ୍ରାହ୍ମଣ ସମାଜରେ ଉନ୍ନତିର ସୂତ୍ରପାତ ଉପସ୍ଥିତ କରିବ ଏପରି ଜଣାଯାଉଅଛି ।”

ଜଗଦ୍ବାସିନୀ କହୁଅଛନ୍ତି “ଗତବର୍ଷର କାର୍ଯ୍ୟ ଅପେକ୍ଷା ଏବର୍ଷର କାର୍ଯ୍ୟ ଫଳପ୍ରଦ କ୍ରମାଗତ ଉନ୍ନତ ଦିଗରେ ଅଗ୍ରସର ହେଉଥିବାର ଅନୁମିତ ହୁଏ ”

କାର୍ଯ୍ୟାବଳୀ —

ଆମ୍ଭେମାନେ ଅବତରଣିକାରେ କହିଅଛୁଁ “ସେ ବର୍ଷର ପ୍ରାରମ୍ଭରେ କଳ୍ପିତ କାର୍ଯ୍ୟର ଅଂଶମାତ୍ର ସମ୍ପାଦିତ ହୋଇଅଛି । ବିଶେଷ ଦୈବ ଦୁର୍ଘଟନା ଉପସ୍ଥିତ ହୋଇ ନ ଥିଲେ କାର୍ଯ୍ୟ ଅପେକ୍ଷାକୃତ ଅଧିକ ଅଗ୍ରସର ହୋଇଥାନ୍ତା । ଦୁଇମାସ ବ୍ୟାପୀ ପ୍ଲେଗର ମହାମାରୀ ଏବଂ ସମିତିର ଅନେକ ସଭ୍ୟ ଓ ପୃଷ୍ଠପୋଷକଙ୍କ ମରଣରେ ଦୀର୍ଘ ଦାରୁଣ ଯାତନା କାର୍ଯ୍ୟ କ୍ଷେତ୍ରରେ ଆମ୍ଭମାନଙ୍କର ବିଶେଷ ଅନ୍ତରାୟ ହୋଇଅଛି, ଯାହାହେଉ ମଙ୍ଗଳ ବିଧାତାଙ୍କ କୃପାରୁ ଆମ୍ଭେମାନେ ଯେତେଦୂର ଅଗ୍ରସର ହୋଇ ଅଛୁଁ ଏବଂ ତାହାଙ୍କ ଉପରେ ଏକାନ୍ତ ନିର୍ଭର ରଖି ଭବିଷ୍ୟତରେ ବିଶେଷ ସଫଳ କାମ ହେବାର ଆଶା ରଖିଅଛୁଁ । ବର୍ତ୍ତିତ ବର୍ଷରେ ସମିତିର ମୋଟ ଅଧିବେଶନ ସଂଖ୍ୟା ମୋଟ ୧୭ ଟି ମଧ୍ୟରୁ ସାଧାରଣ ଅଧିବେଶନ ସଂଖ୍ୟା ମୋଟ ୧୪ଟି ଏବଂ ବିଶେଷ ଅଧିବେଶନ ସଂଖ୍ୟା ୩ମାତ୍ର । ସାଧାରଣ ଅଧିବେଶନମାନଙ୍କରେ ଅର୍ଥିକ ଗୃହ ଏବଂ ମୁଷ୍ଟିଭିକ୍ଷାର ବନ୍ଦୋବସ୍ତ ବିସ୍ତାର ଏବଂ ସଂଗ୍ରହର ଉପାୟ ନିର୍ଦ୍ଧାରଣ ଏବଂ ବ୍ରାହ୍ମଣସନ୍ତାନ ମାନଙ୍କର ଶିକ୍ଷା ଓ ଶିକ୍ଷାଗୃହର ବିଧାନର ଆଲୋଚନା କରାଯାଇଥାଏ । ଉକ୍ତ ଗୋଟିଏ ବିଶେଷ ଅଧିବେଶନରେ ସ୍ଥାନୀୟ ଅନ୍ୟାନ୍ୟ ସମିତିମାନଙ୍କ ସହିତ ଏହି ଉଦ୍ଦେଶ୍ୟର ସମିତିମାନଙ୍କ ଏକତ୍ରୋପବେଶନ କରାଯାଇଥିଲା ।

ପ୍ରଚାର—

ଏବର୍ଷର କାର୍ଯ୍ୟ ମଧ୍ୟରେ ନୂତନ ଏବଂ ବିଶେଷ କାର୍ଯ୍ୟ ପ୍ରଚାର। ସମିତି ଅନେକ ବର୍ଷ ହେଲା ପୁରୀରେ ସ୍ଥାପିତ ହେଲେହେଁ ଏହାର ଉଦ୍ଦେଶ୍ୟ ଏବଂ କାର୍ଯ୍ୟ ଉତ୍କଳର ଅନ୍ୟାନ୍ୟ ସ୍ଥାନରେ ଏମନ୍ତକି ଏହି ପୁରୀ ଜିଲ୍ଲାର ଅନେକ ଗ୍ରାମରେ ଏ ପର୍ଯ୍ୟନ୍ତ ଲୋକସାଧାରଣରେ ପ୍ରଚାରିତ ହୋଇ ନାହିଁ। କେବଳ ପୁରୀର ବା ଅନ୍ୟାନ୍ୟ କେତେକ ନଗର ବା ପ୍ରଧାନ ଗ୍ରାମର ଶିକ୍ଷିତ ବ୍ୟକ୍ତିମାନଙ୍କ ବ୍ୟତୀତ ଅନ୍ୟ କେହି ବ୍ରାହ୍ମଣସମିତିର ଉଦ୍ଦେଶ୍ୟାଦି ସମ୍ବନ୍ଧରେ କିଛି ଅବଗତ ନ ଥିଲେ। ଏହା ଅବଶ୍ୟ ସ୍ୱୀକାର୍ଯ୍ୟ ଯେ କେବଳ ମୁଷ୍ଟିମେୟ ଶିକ୍ଷିତ ସମାଜର ସଙ୍କୀର୍ଣ୍ଣ ପରିସର ଅତିକ୍ରମ କରି ବିପୁଳ ବ୍ରାହ୍ମଣସାଧାରଣରେ ପ୍ରଚାରିତ ନ ହେଲେ ସମିତିର ଲକ୍ଷ୍ୟସିଦ୍ଧି ବିଶେଷ ଆଶାଜନକ ନୁହେ। ସାଧାରଣଙ୍କୁ ଶିକ୍ଷିତ କରିବା ହିଁ ଶିକ୍ଷିତଙ୍କର କାର୍ଯ୍ୟ। ସୁତରାଂ ସାଧାରଣଙ୍କ ନିକଟରେ ସେମାନଙ୍କ ହିତ କାମନାରେ ପ୍ରତିଷ୍ଠିତ ବିଧାନ ଏବଂ କାର୍ଯ୍ୟମାନ ଅବଗତ କରାଇ ଦୀର୍ଘ ବ୍ରାହ୍ମଣଶାସନ ଓ କ୍ଷୁଦ୍ର ପଲ୍ଲୀ ସବୁରେ ଏହି ସମିତିର କାର୍ଯ୍ୟ ପ୍ରଚାର କରିବାର ଉଚିତ ବିବେଚନା କରି ସମିତି ଏ ବର୍ଷ ଉକ୍ତ କାର୍ଯ୍ୟରେ ହସ୍ତକ୍ଷେପ କରିବାକୁ ସାହାସୀ ହୋଇଅଛନ୍ତି। ଏହି କାର୍ଯ୍ୟରେ ଉତ୍କଳ ସମ୍ମିଳନୀ ଆମ୍ଭମାନଙ୍କର ପ୍ରକୃଷ୍ଟ ଆଦର୍ଶ। ସମ୍ମିଳନୀ ମୋଫସଲରେ ପ୍ରଚାର କାର୍ଯ୍ୟ ଆରମ୍ଭ କରି ଦେଶରେ ଏକ ଅଭିନବ ଜାଗରଣ ଜନ୍ମାଇ ଅଛନ୍ତି। ଆମ୍ଭେମାନେ ତାହାଙ୍କ ପଦାଙ୍କ ଅନୁସରଣ କରି ଅନେକ ପରିମାଣରେ ତାହାଙ୍କ ଉଦ୍ଦେଶ୍ୟର ପୋଷକଭାବରେ ପ୍ରଥମେ ଉତ୍କଳର ବ୍ରାହ୍ମଣସମାଜରେ ପ୍ରଚାର କରିବାର ମନସ୍ଥ କରିଅଛୁ। ଏ ପ୍ରସ୍ତାବ ସମିତିରେ ଦୁଇମାସ ପୂର୍ବେ ନିର୍ଦ୍ଧାରିତ ହୋଇଥିଲା। ଇତି ମଧ୍ୟରେ ପ୍ରାୟ ୧୫ ଟି ଗ୍ରାମରେ ଯଥାବିଧି ପ୍ରଚାର କାର୍ଯ୍ୟ ହୋଇଅଛି ପ୍ରଚାର ଦ୍ୱାରା ଆଶାନୁରୂପ ଫଳର ସମ୍ଭାବନା କରି ଆମ୍ଭମାନଙ୍କର ଜଣେ

ପ୍ରସ୍ତୁତ କରୁଅଛନ୍ତି । ଗତ ବଡଦିନ ଅବକାଶରେ ବେଙ୍ଗଲବ୍ରାହ୍ମଣ-ଶାସନରେ ଏହି ସମିତିର ବାର୍ଷିକ ଅଧିବେଶନଙ୍କ ନିବେଦନହସ୍ତରେ ଗ୍ରାମସ୍ଥ ଭଦ୍ର ସମିତିର ଉଦ୍ଦେଶ୍ୟ ଏବଂ କାର୍ଯ୍ୟ ପ୍ରଣାଳୀ କରି ଗ୍ରାମବାସି ମାନଙ୍କର ହୃଦୟରୁ ଭାବ ଓ ବ୍ୟବହାରରୁ ଦେଖିଅଛୁ ତହିଁରୁ ଭରସା କରାଯାଏ ଯେ ଏହି ପ୍ରଣାଳୀକ୍ରିୟା ଦ୍ୱାରା ଜାତୀୟ ଭାବ ବିଶେଷ ପରିମାଣରେ ଜାଗ୍ରତ କରାଯାଇପାରେ ଏବଂ ଏହି ବ୍ରାହ୍ମଣ ସମିତିର ଉଦ୍ଦେଶ୍ୟ ତଥା ଉତ୍କଳସମ୍ମିଳନୀର ଉଦ୍ଦେଶ୍ୟ ପ୍ରଚାରିତ ଓ ସାଧିତ ହୋଇପାରେ ।

ଛାତ୍ରାବାସ —

ଗତ ବର୍ଷ ଆମ୍ଭେମାନେ ଛାତ୍ରାବାସ ବୃଦ୍ଧିର ଆବଶ୍ୟକତା ପ୍ରକାଶ କରିଥିଲୁଁ । ସୁଖର କଥା ଏହି ଯେ ଉତ୍କଳର ଅଧିକାଂଶ ପତ୍ରିକା ତଦୁଦ୍ଦେଶ୍ୟରେ ସାଧାରଣଙ୍କଠାରେ ସହାନୁଭୂତି ଏବଂ ସାହାଯ୍ୟ ପ୍ରାର୍ଥନା କରିଥିଲେ । ଏଥିପାଇଁ ଆମ୍ଭେମାନେ ସେମାନଙ୍କୁ ଆନ୍ତରିକ ଧନ୍ୟବାଦ ଅର୍ପଣ କରୁଅଛୁଁ । ସାଧାରଣଙ୍କ ଅବଗତ ନିମନ୍ତେ ଏଠାରେ ପ୍ରକାଶ କରୁଅଛୁଁ ଯେ ପାକଶାଳା ବ୍ୟତୀତ ଛାତ୍ରାବାସର ପରିମାଣ ବ ୬ ଖଣ୍ଡ ମାତ୍ର । ଏଥିରେ କ ୧୮ ଜଣ ଛାତ୍ର ସୁବିଧାରେ ରହିପାରନ୍ତି । ଗତବର୍ଷ ଶେଷରେ ଏଥିରେ ଜ ୧୫ ଜଣ ଛାତ୍ର ଥିଲେ । ତନ୍ମଧ୍ୟରୁ ଜଣେ ଏହି ସମିତି ସାହାଯ୍ୟରେ ଗତ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ବର୍ତ୍ତମାନ କଟକ କଲେଜକୁ ପ୍ରେରିତ ହୋଇଅଛନ୍ତି । ଅନ୍ୟାନ୍ୟ କେତେକ କାରଣରୁ ବର୍ଷଶେଷର ପୂର୍ବର ଗତ ମାସତ୍ରୟ ସମୟରେ କେତେଗୁଡ଼ିଏ ଛାତ୍ର ସ୍ଥାନାନ୍ତରକୁ ଯାଇଅଛନ୍ତି । ଯାହାହେଉ ପୁନର୍ବାର ନୂତନ ଛାତ୍ର ଆସି ସେମାନଙ୍କ ସ୍ଥାନ ପୂରଣ କରିବାରୁ ପୂର୍ବସଂଖ୍ୟା ୧୫ ରୁ କିଛି ହ୍ରାସ ହୋଇନାହିଁ । ନୂତନ ବର୍ଷର ଆରମ୍ଭରୁ ଛାତ୍ରସଂଖ୍ୟା କ୍ରମଶଃ ବର୍ଦ୍ଧିତ ହେଉଅଛି । ଆଶାକରାଯାଏ ନିକଟରେ ନିର୍ଦ୍ଦିଷ୍ଟ ଅଷ୍ଟାଦଶ ସଂଖ୍ୟା ପୂରଣ ହୋଇଯିବ । ତାହାହେଲେ ଏଠାରେ ଛାତ୍ରାବାସର ପରିମାଣ ବୃଦ୍ଧି ଏକାନ୍ତ ପ୍ରୟୋଜନ ।

ପୂର୍ବବର୍ଷ ପରି ଅମ୍ଭମାନଙ୍କର ସ୍ନେହସ୍ପ କାର୍ଯ୍ୟନିର୍ବାହକା ସମିତିର ଅନ୍ୟତମ ସଭ୍ୟ ଶ୍ରୀଯୁକ୍ତ ବାବୁ ଚିନ୍ତାମଣିଙ୍କର ମହାଶୟ ଦକ୍ଷତାର ସହିତ ଛାତ୍ରାବାସର ତତ୍ତ୍ୱାବଧାନ କାର୍ଯ୍ୟ ସୁଶୃଙ୍ଖଳରୂପେ ନିର୍ବାହ କରି ଆସୁଅଛନ୍ତି । ଅମ୍ଭମାନଙ୍କର ଅବୈତନିକ ଡାକ୍ତର ଶ୍ରୀଯୁକ୍ତ ବାବୁ ବାସୁଦେବଙ୍କର ମହାଶୟ ଏବର୍ଷ ମଧ୍ୟ ଏହି ଛାତ୍ରାବାସର ଚିକିତ୍ସା କାର୍ଯ୍ୟ ଅବୈତନିକଭାବରେ ସମ୍ପାଦନ କରି ଆସୁଥିଲେ । କିନ୍ତୁ ଅଳ୍ପଦିନ ହେଲା ସେ ସ୍ଥାନାନ୍ତରିତ ହୋଇଅଛନ୍ତି । ଏପର୍ଯ୍ୟନ୍ତ ସ୍ଥାୟୀଭାବରେ କିଛି ବ୍ୟବସ୍ଥା ହୋଇନାହିଁ । ଯାହାହେଉ ଏହି ଛାତ୍ରାବାସର ପ୍ରତିବେଶୀ, ପୁରୀର ସୁପରିଚିତ ଲୋକପ୍ରିୟ ଡାକ୍ତର ଶ୍ରୀଯୁକ୍ତ ବାବୁ ଗଗନଚନ୍ଦ୍ର ଦାସଗୁପ୍ତ ମହାଶୟ ସାମୟିକ ଆବଶ୍ୟକମତେ ଏହାର ଚିକିତ୍ସାଭାର ନିଃସ୍ୱାର୍ଥଭାବରେ ଗ୍ରହଣ କରି ନିଜ ଉଦାରତାର ପରିଚୟ ଦେଇ ଅଛନ୍ତି । ଏଥିପାଇଁ ସମିତି ତାହାଙ୍କଠାରେ ବିଶେଷ ଋଣୀ । ଏଠାର ସିଭିଲ୍ସର୍ଜନ ମହୋଦୟ ଏହି ଛାତ୍ରାବାସ ପରିଦର୍ଶନ କରିଥିଲେ ଏବଂ ଶିକ୍ଷା ବିଭାଗୀୟ ଡିରେକ୍ଟର ସାହେବଙ୍କ ଛାତ୍ରାବାସ ସମ୍ବନ୍ଧୀୟ ନୂତନ ନିୟମାନୁସାରେ ଏହା ଛାତ୍ରାବାସର ଉପଯୋଗୀ ବୋଲି ମତ ଅଭିବ୍ୟକ୍ତ କରିଅଛନ୍ତି । ଚେଣୁ ଆଶିଷ୍ଟାଣ୍ଟସର୍ଜନ ସରକାର ବାହାଦୁରଙ୍କ ପକ୍ଷରୁ ଏହି ଛାତ୍ରାବାସର ସ୍ୱାସ୍ଥ୍ୟବିଷୟରେ ତତ୍ତ୍ୱନେବେ ବୋଲି ଅମ୍ଭମାନଙ୍କର ଏକ ପ୍ରକାର ଭରସା ଅଛି । ବର୍ତ୍ତିତବର୍ଷରେ କାର୍ଯ୍ୟନିର୍ବାହକା ସମିତିର ମେମ୍ବରମାନଙ୍କ ବ୍ୟତୀତ ଯେଉଁ ସ୍ଥାନୀୟ ଓ ଅଗନ୍ତୁକ ଭଦ୍ରବ୍ୟକ୍ତି ନ ୧୦ ଣ ଥ୧୦ର ଏହି ଛାତ୍ରାବାସ ପରିଦର୍ଶନ କରି ଅଜନ ଦ୍ରବାଶ ପୂର୍ବକ ଦର୍ଶକାଭିପ୍ରାୟ ବହିରେ ଲେଖି ଯାଇଅଛନ୍ତି ସେମାନଙ୍କ ମଧ୍ୟରୁ ଶିକ୍ଷାବିଭାଗର ଇନ୍ସପେକ୍ଟର ଶ୍ରୀଯୁକ୍ତ ବାବୁ ମଧୁସୂଦନ ରାଓ, ସ୍ଥାନୀୟ ଉଚ୍ଚ ଇଂରାଜୀ ବିଦ୍ୟାଳୟର ହେଡ୍ ମାଷ୍ଟର ଶ୍ରୀଯୁକ୍ତ ବାବୁ ଚନ୍ଦ୍ରମୋହନ ମହାରଣା ବି, ଏ, ଶ୍ରୀଯୁକ୍ତ ବାବୁ ଦାମୋଦର ପଟ୍ଟନାୟକ ମ୍ୟାନେଜର, ଗଞ୍ଜାମର ସୁଯୋଗ୍ୟ ଭୃତ୍ୟ ଶ୍ରୀଯୁକ୍ତ ବାବୁ ଚଣ୍ଡୀଚରଣ

ଉଠନ୍ତି ଏ ଏବଂ ଶ୍ରୀ ଜଗବନ୍ଧୁ ପାଲ ବି ଏ ଏବଂ ସ୍ଥାନୀୟ ଜମିଦାର ଶ୍ରୀଯୁକ୍ତ ଚୌଧୁରୀ ଗୋପୀକୃଷ୍ଣ ଦାସ ଓ ଗୋଲକଚନ୍ଦ୍ର ଦାସ ପ୍ରଭୃତିଙ୍କ ନାମ ଉଲ୍ଲେଖ ଯୋଗ୍ୟ ।

### ଛାତ୍ରାବାସର ଶାସନ

ବର୍ତ୍ତମାନ ବର୍ଷରେ ଛାତ୍ରମାନଙ୍କର କୌଣସି ପ୍ରକାର ଚରିତ୍ରଗତ ତ୍ରୁଟି ପରିଲକ୍ଷିତ ହୋଇନାହିଁ । ସେମାନଙ୍କର ସନ୍ଧ୍ୟା ଉପାସନାଦି କର୍ତ୍ତବ୍ୟ ପ୍ରତି ବହୁତ ଦୃଷ୍ଟି ଦିଆଯାଇଥାଏ । ସାମୟିକ ଉପଦେଶ ଛଡ଼ା ତପସ୍ୟା, ବ୍ରହ୍ମଚର୍ଯ୍ୟ ଏବଂ ଛାତ୍ରଜୀବନ ସମ୍ବନ୍ଧରେ କେତେଗୋଟି ବକ୍ତୃତା ହୋଇଥିଲା । ବ୍ୟାୟାମର ଉପକରଣ ଏପର୍ଯ୍ୟନ୍ତ କିଛି ସଂଗୃହୀତ ହୋଇ ନ ଥିଲେହେଁ ଛାତ୍ରାବାସର ପ୍ରଶସ୍ତ ପ୍ରାଙ୍ଗଣରେ ଦେଶୀୟ ରୀତିରେ ପ୍ରତିଦିନ ବ୍ୟାୟାମ ହୁଏ ।

ଅତୀବ ସୁଖର ବିଷୟ ଯେ, ଏହି ଛାତ୍ରାବାସରେ ଥିବା ସମସ୍ତ ଛାତ୍ର ନିଜ ନିଜ ବାର୍ଷିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଅଛନ୍ତି ; ଏବଂ ଜଣକ ବ୍ୟତୀତ ସମସ୍ତେ ଯାନ୍ ଯାନ୍ ବିଷୟରେ ପୁରସ୍କାର ପ୍ରାପ୍ତ ହୋଇଅଛନ୍ତି । ପଣ୍ଡିତ ଜଣେ ଛାତ୍ର ସଚ୍ଚରିତ୍ର ହେତୁ ପୁରସ୍କାର ପାଇଥିବା ଛାତ୍ରାବାସ ପକ୍ଷରେ ଗୌରବର ବିଷୟ ।

### ଛାତ୍ର ସମିତି ।

ଏହି ଛାତ୍ରାବାସରେ ଛାତ୍ରମାନଙ୍କର ଗୋଟିଏ ସଭା ଅଛି । ଏହା ଶନିବାର ପ୍ରତି ସପ୍ତାହର ଶନିବାର ଦିନ ହୋଇଥାଏ । ବର୍ତ୍ତମାନ ବର୍ଷରେ ଏହାର ମୋଟ ୧୫ ଟି ଅଧିବେଶନ [illegible] । ଏହି ଅଧିବେଶନ ମାନଙ୍କରେ ଇଂରେଜୀ ଓ ମାତୃଭାଷା [illegible] ଲୋଚନା କରାଯାଇଥାଏ । କାର୍ଯ୍ୟ ନିର୍ବାହକ କମିଟିର କୌଣସି ସଭ୍ୟ ଏଥିରେ ଯୋଗ ଦେଇ ଥାଆନ୍ତି । ଏହି ପ୍ରସଙ୍ଗରେ କୃତଜ୍ଞତାର ସହିତ ସ୍ୱୀକାର କରୁଅଛୁ ଯେ ପରମ ଶ୍ରଦ୍ଧାସ୍ପଦ ଶ୍ରୀଯୁକ୍ତ ପଣ୍ଡିତ ନିଳମଣି ବିଦ୍ୟାରତ୍ନ ମହାଶୟ ଛାତ୍ରମାନଙ୍କୁ ବିନା ମୂଲ୍ୟରେ ପ୍ରଜାବନ୍ଧୁ, ଉତ୍କଳମଧୁପ ଏବଂ ସଂସ୍କାରକ

ପ୍ରଦାନ କରି ଛାତ୍ରମାନଙ୍କ ସାହିତ୍ୟଶିକ୍ଷାରେ ସାହାଯ୍ୟ ହୋଇ-ଅଛନ୍ତି !

### ସାଧାରଣ କାର୍ଯ୍ୟରେ ସହଯୋଗଦାନ—

ଗତବର୍ଷ ଏହି ସମିତିର କେତେକ ବିଶିଷ୍ଟ ସଭ୍ୟଙ୍କ ଯତ୍ନରେ ଏଅଞ୍ଚଳରେ ସଂସ୍କୃତ ଶିକ୍ଷାର ପ୍ରଚାର ନିମନ୍ତେ ଡିରେକ୍ଟରଙ୍କ ନିକଟରେ ଆବେଦନ କରାଯାଇଥିଲା । ଉକ୍ତ ମହୋଦୟଙ୍କ ଅନୁକମ୍ପାରେ ଏହି ଜିଲାର ମଫସଲରେ ଗୋ ୫ ଟି ଟୋଲ ହେବାର ଆଶା ଥିଲା ବୋଲି ଯାହା ଲେଖିଥିଲୁ ଆନନ୍ଦର ସହିତ ଜଣାଉଅଛୁ ଯେ ଏବର୍ଷ ଆମ୍ଭମାନଙ୍କର ଉକ୍ତ ଆଶା ଫଳବତୀ ହୋଇଅଛି ।

ସ୍ମୃତି ଓ ବେଦାନ୍ତର ଉଚ୍ଚଶିକ୍ଷା ନିମନ୍ତେ ଏଠାରେ କୌଣସି ପ୍ରକାର ସୁବିଧା ନଥିଲା । ପୁରାତନ ଧର୍ମକ୍ଷେତ୍ର ପକ୍ଷରେ ଏହା ଅତ୍ୟନ୍ତ ଗୁରୁତର ଅଭାବ । ଏହି ଅଭାବ ପୂରଣ ଲାଗି ମଧ୍ୟ ଗତବର୍ଷ ଏସମିତିର କେତେକ ବିଶିଷ୍ଟ ସଭ୍ୟ ସରକାରଙ୍କ ନିକଟରେ ଆବେଦନ କରିଥିଲେ କୃତଜ୍ଞତାର ସହିତ ପ୍ରକାଶ କରୁଅଛୁ ଯେ, ମଫସଲରେ ଉକ୍ତ ଗୋ ୪ ଟି ଟୋଲ ମଞ୍ଜୁର କରିବା ସଙ୍ଗେ ସରକାର ବାହାଦୁର ମଧ୍ୟ ଏ ନଗରରେ ସଂସ୍କୃତ ବିଦ୍ୟାଳୟର ସଙ୍ଗରେ ସ୍ମୃତି ଓ ବେଦାନ୍ତର ଦୁଇଗୋଟି ଉଚ୍ଚଶ୍ରେଣୀ ସଂଯୋଗ କରି ସମସ୍ତ ଉତ୍କଳରେ ଉନ୍ନତ ସଂସ୍କୃତ ଶାସ୍ତ୍ରାଲୋଚନାର ସୁବ୍ୟବସ୍ଥା କରିଅଛନ୍ତି ।

ଏତନ୍ମଧ୍ୟ ସରକାରଙ୍କ ସାହାଯ୍ୟ ବଳେ ସୁପରିଚାଳିତ ଉତ୍କଳେଶ୍ୱର ବିଦ୍ୟାଭୂଷଣ ଟୋଲ ଅନ୍ୟତମ ଅଟେ ।

ଏଠାରେ ପ୍ରକୃତ କାର୍ଯ୍ୟର ଶୁଭଫଳ ସ୍ୱରୂପ ଉଲ୍ଲେଖ କରୁଅଛୁ ଯେ ସୁଅଣ୍ଡୋ ଶାସନରେ ସ୍ଥାନୀୟ ଜମିଦାର ଶ୍ରୀଯୁକ୍ତ ନାରାୟଣ ଦାସ ମହାଶୟଙ୍କ ଯତ୍ନରେ ସାଧାରଣ ଶିକ୍ଷା ଲାଗି ଗୋଟିଏ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ସ୍ଥାପିତ ହୋଇଅଛି । କର୍ତ୍ତୃପକ୍ଷଙ୍କର ଅନୁକମ୍ପା ଏବଂ କାର୍ଯ୍ୟତତ୍ପରତାରେ ଏହା ଅତି ଶୀଘ୍ର ହୋଇଅଛି । ସମିତିର ପ୍ରସ୍ତାବିତ ପ୍ରଚାରକାର୍ଯ୍ୟଦ୍ୱାରା ମୋଫସଲବାସୀଙ୍କର ଶିକ୍ଷା ପ୍ରତି ସ୍ପୃହା ଓ ମମତା

ଜନ୍ମ ବାଭ ଆଶାକରୁଁ । କର୍ତ୍ତୃପକ୍ଷ ଏହପର ଉକ୍ତ ଧୃବା ଓ ମନଚାର୍ ତୃପ୍ତି ବିଧାନ କଲେ ଦେଶରେ ଅଚିରେ ଶିକ୍ଷାର ବହୁଳ ବିସ୍ତାର ହେବ ।

ସତ୍ୟବାଦୀ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ଛାତ୍ରାବାସରୁ ପୂର୍ଣ୍ଣ ଅବସ୍ଥାରେ ଥିଲା । ପ୍ରଚାର ଏବଂ ପ୍ରବର୍ତ୍ତନା ଦ୍ୱାରା ଏହି ଅଳ୍ପ ସମୟ ମଧ୍ୟରେ ସ୍ଥାନୀୟ ଲୋକେ ଅଗ୍ରହ ସହକାରେ ଏତେ ଛାତ୍ର ପ୍ରେରଣ କରୁଅଛନ୍ତି ଯେ, ବର୍ତ୍ତମାନ ତିନିଜଣ ଶିକ୍ଷକଙ୍କ ଦ୍ୱାରା କାର୍ଯ୍ୟ ନିର୍ବାହିତ ହେବା ଏକ ପ୍ରକାର କଠିନ ହୋଇଅଛି ।

ସାହାଯ୍ୟଦାନ—

ଜ ୯ ଣ ଛାତ୍ରଙ୍କୁ ସାହାଯ୍ୟ ଦିଆଯାଇଥିବାର ଗତ ବର୍ଷ ବିବରଣରେ ପ୍ରକାଶିତ ହୋଇଥିଲା । ବର୍ଣ୍ଣିତ ବର୍ଷରେ ଜ ୧୧ ଣ ଛାତ୍ରଙ୍କୁ ସାହାଯ୍ୟ ଦିଆଯାଇଅଛି । ସଂସ୍କୃତରେ ଦୁଇଜଣ, ଇଂରେଜିରେ ଜ ୬ ଣ, ମାତୃଭାଷାରେ ଜ ୩ ଣ ସାହାଯ୍ୟ ପ୍ରାପ୍ତ ହୋଇ ଭିନ୍ନ ସ୍ଥାନର ସ୍କୁଲ କଲେଜ ଟୋଲମାନଙ୍କରେ ଅଧ୍ୟୟନ କରୁଅଛନ୍ତି ।

ଆୟବ୍ୟୟର ହିସାବ ।

| | |
|---|---|
| ଆୟ—ଗତ ବର୍ଷ ଶେଷସୁଦ୍ଧା ସମିତିହସ୍ତରେ ଗଚ୍ଛିତ | ଟ ୬୪୫୳ |
| ବର୍ଣ୍ଣିତ ବର୍ଷରେ ବାର୍ଷିକ ଚାନ୍ଦା | ଟ ୵୯୬ ୧୬ |
| " " ଏକକାଳୀନଚାନ୍ଦା | ଟ ୯୯୪୶୪ |
| ମୁଷ୍ଟି ଭିକ୍ଷାରୁ ସଂଗୃହୀତ | ଟ ୮୵୪୶ |
| ଗଚ୍ଛିତ ଟଙ୍କାରୁ ଆୟ | ଟ ୬୮୦୲୶ |
| ଅତିରିକ୍ତ ଆୟ | ଟ ୧୪୵୯ |
| ମୋଟ | ଟ ୧୩୫୪୳୵ ୧୧ |

ବ୍ୟୟ—

| | |
|---|---|
| ବର୍ଣ୍ଣିତ ବର୍ଷରେ ସାହାଯ୍ୟ ଦାନରେ | ଟ ୧୬୦୧ |
| ଛାତ୍ରାବାସର ବୃଷାଦି ବ୍ୟୟ | ଟ ୬୧୬ |
| ଗତବର୍ଷର ବିବରଣ ଛା ପା । | ଟ ୧୪୵୬ |

| | |
|---|---|
| ସମିତିର ଆବଶ୍ୟକୀୟ କାଗଜପତ୍ର ଓ ଡାକଖର୍ଚ୍ଚ | ଟ ୪।୵୨ |
| ମୁଷ୍ଟି ଭିକ୍ଷା ସଂଗ୍ରହରେ | ଟ୪ ୧୨୩ |
| ଶତାବ୍ଦୀସର ଘଣ୍ଟା ଓ ଟାଙ୍କୁ | ଟ ।।। |
| ସ୍ମାରାବାସର ମରାମତି | ଟ ।୨ ୱ |
| ଗତ ବର୍ଷ ବାର୍ଷିକ ଅଧିବେଶନରେ | ଟ ୧୫୵ ୩ |
| ନୂତନ ବୋର୍ଡିଂର ମୂଲ୍ୟପତ୍ରନରେ | ଟ ୧୫୧ |
| ମୋଟ | ଟ ।୬୨୪।୵୨୪ |
| ଅତଏବ ମୋଟ ଜମା | ଟ ୧୪୫୪୪।୵୧୧ ମଧ୍ୟରୁ |
| ଖର୍ଚ୍ଚ | ଟ ୨୨୨।୵୨୪ ଯାଇ |
| ଅବଶିଷ୍ଟ ସମିତିର ନାମରେ ଗଚ୍ଛିତ | ଟ ୧୧୮୨/୩୪ ଅଛି |

ସଭ୍ୟସଂଖ୍ୟା—ଗତବର୍ଷ ଶେଷରେ ସଭ୍ୟସଂଖ୍ୟା ୧୫୫ ଥିଲା ବର୍ତ୍ତମାନ ବର୍ଷରେ ନିୟମିତ ଚାନ୍ଦା ନ ଦେବାରୁ ଜ ୧୦ ଜଣଙ୍କ ନାମ କର୍ତ୍ତିତ ହୋଇଅଛି ଏବଂ ଜ ୩୦ ଜଣ ନୂତନ ଚାନ୍ଦାଦାତାଙ୍କ ନାମ ସଂଯୋଜିତ ହୋଇ ବର୍ତ୍ତମାନ ମୋଟ ସଭ୍ୟସଂଖ୍ୟା ଜ ୧୭୫ ଜଣ ମାତ୍ର ହୋଇଅଛି ।

କାର୍ଯ୍ୟନିର୍ବାହକ ସମିତି——

କାର୍ଯ୍ୟନିର୍ବାହକ ସମିତିର ସଭ୍ୟ ତାଲିକା ଗତ ବର୍ଷ ବିବରଣୀରେ ପ୍ରକାଶିତ ହୋଇଥିଲା । ଉକ୍ତ ତାଲିକାରୁ ଜ ୨ ଜଣ ନିୟମିତ ଅନୁପସ୍ଥିତ ହେତୁରୁ ସେମାନଙ୍କ ନାମ କର୍ତ୍ତିତ ହୋଇଅଛି । ଅନ୍ୟ ଜ ୩ ଜଣ ନୂତନ ସଭ୍ୟ ସଂଯୋଜିତ ହୋଇଅଛନ୍ତି । ସେମାନଙ୍କ ମଧ୍ୟରୁ ଶ୍ରୀଯୁକ୍ତ ବାବୁ ଗୋପୀନାଥମିଶ୍ର (ଶ୍ରୀ) ନବୀନ ଉତ୍ସାହରେ କାର୍ଯ୍ୟ କରି ବିଶେଷ ଧନ୍ୟବାଦର ପାତ୍ର ହୋଇଅଛନ୍ତି । ନିମ୍ନରେ ଏବର୍ଷ କାର୍ଯ୍ୟନିର୍ବାହକ ସମିତିର ସଭ୍ୟମାନଙ୍କ ନାମ ପ୍ରକାଶିତ ହେଲା ।

ଶ୍ରୀଯୁକ୍ତ ପଣ୍ଡିତ ସଦାଶିବମିଶ୍ର ସଭାପତି
,, ମିଠୁମିଶ୍ର ସହକାରୀ ସଭାପତି

ଶ୍ରୀଯୁକ୍ତ ରାମଚନ୍ଦ୍ରଦାସ ତର୍କଭୂଷଣ ବାଚସ୍ପତି
,, କାଶୀନାଥମହାପାତ୍ର ସମ୍ପାଦକ
,, ପଣ୍ଡିତ ବାସୁଦେବ ରଥ କାବ୍ୟତୀର୍ଥ ସହକାରୀ ସମ୍ପାଦକ
,, ଲୋକନାଥ ରଥ କୋଷାଧ୍ୟକ୍ଷ ।
,, ପଣ୍ଡିତ ଯୋଗେନ୍ଦ୍ରମିଶ୍ର କାବ୍ୟଦର୍ଶନରତ୍ନ
,, ଚକ୍ରପାଣିକର
,, ପଣ୍ଡିତ ପରମାନନ୍ଦମିଶ୍ର
,, ବାସୁଦେବକର
,, ସୁଦର୍ଶନନନ୍ଦ
,, ପଣ୍ଡିତ ନବକୃଷ୍ଣମିଶ୍ର କାବ୍ୟତୀର୍ଥ
,, ଗୋପୀନାଥମିଶ୍ର (କ)
,, ଗୋପୀନାଥମିଶ୍ର (ଖ) } ସଭ୍ୟ
,, ଗୋପବନ୍ଧୁଦାସ ବି, ଏ
,, କାଶୀନାଥମିଶ୍ର
,, ନବକୃଷ୍ଣଦାସ
,, ବଳଭଦ୍ରମିଶ୍ର
,, ଗୋପାଳହୋତା
,, ମଧୁସୂଦନପଣ୍ଡା

ଉପସଂହାର—ବ୍ରାହ୍ମଣମାନେ ଏ ସମିତିର ଉନ୍ନତି କଲ୍ପେ ଯତ୍ନବାନ ହେବା ସ୍ୱାଭାବିକ । ଏହା ବ୍ୟତୀତ ବ୍ରାହ୍ମଣେତର ବର୍ଣ୍ଣ ଏମନ୍ତ କି ଅନେକ ଅହିନ୍ଦୁ ମଧ୍ୟ କାର୍ଯ୍ୟ, ବାକ୍ୟ ଏବଂ ଅର୍ଥଦ୍ୱାରା ଏ ସମିତି ପ୍ରତି ସହାନୁଭୂତି ଓ ଆନୁକୂଲ୍ୟ ପ୍ରକାଶ କରି ଅଛନ୍ତି । ଆମ୍ଭେମାନେ ଜାଣୁ ଏପରି ଅନେକ ସଦାଶୟ ବ୍ୟକ୍ତି ଅଛନ୍ତି ଯେ, ବ୍ରାହ୍ମଣସମିତି ସହିତ ସେମାନଙ୍କର ପ୍ରତ୍ୟକ୍ଷ ସଂଯୋଗ ଘଟି ନ ଥିଲେହେଁ ସନାତନ ଅନୁନ୍ନତ ବ୍ରାହ୍ମଣମାନଙ୍କ ଦୁର୍ଦ୍ଦଶାରେ ବ୍ୟାକୁଳ ହୋଇ ସେମାନଙ୍କର ହିତସାଧନ ନିମନ୍ତେ ଯଥାଶକ୍ତି ଯତ୍ନ କରିଥାନ୍ତି । ଅନ୍ତ ମଧ୍ୟ ଆମ୍ଭମାନଙ୍କର ଧ୍ରୁବ ବିଶ୍ୱାସ ଯେ ଅଜ୍ଞାତଭାବରେ ଅନେକ ବ୍ୟକ୍ତି ନାନାପ୍ରକାରରେ ଏହି ଦୁରବସ୍ଥ ସମ୍ପ୍ରଦାୟ ପ୍ରତି ସାହାଯ୍ୟ ଓ ସହାନୁଭୂତି ପ୍ରକାଶ କରୁଅଛନ୍ତି

| | |
|---|---|
| ଶ୍ରୀଯୁକ୍ତ ମଧୁସୂଦନ ଆଚାର୍ଯ୍ୟ ବାଡପଡ଼ା | ୪ ୧ ୧ |
| ,, ମାଧବ ସ୍ୱମ୍ପୁରୁ ଦଳଚଣ୍ଡୀ ସାହି | ୪ ୧ ୧ |
| ,, ମଦନ ସାମନ୍ତରାୟ ଜୟପୁର | ୪ ୧ ୧ |
| ,, ରାମଚନ୍ଦ୍ର ଶତପଥୀ | ୪ ୧ ୧ |
| ,, ରଘୁନାଥ ସ୍ୱାଇଁ | ୪ ୧ ୧ |
| ,, ଲକ୍ଷଣ ଦାସ | ୪ ୧ ୧ |
| ,, ବୈଦ୍ୟନାଥ ମିଶ୍ର ଦଳଚଣ୍ଡୀ ସାହି | ୪ ୧ ୧ |
| ,, ଲୋକନାଥ ବ୍ରହ୍ମା ସୋରଡ଼ଥ | ୪ ୧ ୧ |
| ,, ସିଦ୍ଧେଶ୍ୱର ମିଶ୍ର | ୪ ୧ ୧ |
| ,, ହରେକୃଷ୍ଣ ମିଶ୍ର କଟକ | ୪ ୧ ୧ |
| ,, ହରିହର ରଥ କଟକ | ୪ ୧ ୧ |
| ,, ହରିହର ଖଣ୍ଡିଆ | ୪ ୧ ୧ |
| ,, ହରେକୃଷ୍ଣ ଖୁଣ୍ଟିଆ | ୪ ୧ ୧ |
| ,, ହରିହର ଘୋଷ ମୋକ୍ତାର | ୪ ୧ ୧ |
| ,, ଛତ୍ରସେନ ଦାସ ଭଗାରପୁର | ୪ ୧ ୧ |
| ,, ଦିବାକର ଦାସ ଉତ୍କଳ କରଣସମ୍ମିଳନୀସମ୍ପାଦକ | ୪ ୧ ୧ |
| ,, ସମୂଜକୃଷ୍ଣ ଖୁଣ୍ଟିଆ ଦଳଚଣ୍ଡୀ ସାହି | ୪ ୧ ୧ |
| ,, ପଣ୍ଡିତ ବୃନ୍ଦାବନ ଷଡ଼ଙ୍ଗୀ କାବ୍ୟତୀର୍ଥ ଗଳଦିପ | ୪ ୧ ୧ |
| ,, ସଦାଶିବ ଦାସ ଦୁର୍ଗାଦାସପୁର | ୪ ୧ ୧ |
| ,, ବୈଷ୍ଣବଚରଣ ମହାନ୍ତି | ୪ ୧ ୧ |
| ,, ବନମାଳୀ ଦାଶ ବାଲେଶ୍ୱର | ୪ ୧ ୧ |
| ,, ସର୍ବେଶ୍ୱର ମହାପାତ୍ର ବାହୁପୁର | ୪ ୧ ୧ |
| ,, ରଘୁନାଥ ପଣ୍ଡା ବି,ଏ | ୪ ୧ ୧ |
| ,, ବୈଦ୍ୟନାଥ ବ୍ରହ୍ମା ଚଉଦ୍ୱାର ସବ୍‌ପୋଃ | ୪ ୧ ୧ |
| ,, ଲକ୍ଷ୍ମୀଧର ରାଜସିଂହ ମହାପାତ୍ର | ୪ ୧ ୧ |

ଶ୍ରୀଯୁକ୍ତ ଲୋକନାଥ ସ୍ୱଜଗୁରୁ ମହାପାତ୍ର ଶର୍ମା ଟ ୧ ୧
,, ଜୟକୃଷ୍ଣ ଶ୍ୟାମପଟ୍ଟନାୟକ ଟ ୧ ୧
,, ନାରାୟଣଚନ୍ଦ୍ର ବନ୍ଦ୍ୟୋପାଧ୍ୟାୟ ଡାକ୍ତର ଟ ୧ ୵
,, ବଳଭଦ୍ର ମିଶ୍ର ଟ ୧ ୵
,, ପଣ୍ଡିତ ବୈଦ୍ୟନାଥ ମିଶ୍ର କାବ୍ୟତୀର୍ଥ ଟ ୧ ୵
,, କାଶୀନାଥ ମିଶ୍ର ଟ ।
,, ପଣ୍ଡିତ ଜୟକୃଷ୍ଣ ମିଶ୍ର କାବ୍ୟତୀର୍ଥ ଟ୧।
,, ,, ଯୋଗେନ୍ଦ୍ର ମିଶ୍ର କାବ୍ୟବିଶାରଦ ଟ୧।
,, ,, ଲୋକନାଥ ମହାପାତ୍ର କାବ୍ୟତୀର୍ଥ ଟ୧।
,, ସତ୍ୟବାଦୀ ଦାସ ଓଭରସିଅର ଟ୧।
,, ହରିହର ମହାପାତ୍ର ବାସେଲୀସାହି ଟ୧।୵
,, ଅନ୍ତର୍ଯ୍ୟାମୀ ପଟ୍ଟନାୟକ 'ମୋକ୍ତାର ଟ୧୲
,, ପଣ୍ଡିତ ଅଖଣ୍ଡଳ ମିଶ୍ର ଟ୧୳
,, ରାମଚନ୍ଦ୍ର ମିଶ୍ର କୁଣ୍ଡାଇବେଣ୍ଟସାହି ଟ୧୳
,, ଗୋପୀନାଥପଣ୍ଡା ( ବାଲିସାହି ) ଟ ୧୳
,, ବାସୁଦେବ କର ଡ଼ାକ୍ତର ଟ ୧୳
,, ବ୍ରଜନାଥ ମିଶ୍ର ପୋଃ ସଃ ଲ ଟ ୧୲
,, ବାଉରିବନ୍ଧୁ ମିଶ୍ର ଟ ୧୳
,, ପଣ୍ଡିତ ବାସୁଦେବ ରଥ କାବ୍ୟତୀର୍ଥ ଟ ୧୳
,, ଗୌରାଙ୍ଗଚରଣ ମହାନ୍ତି ଟ ୧୳
,, ଭଗବାନସେନାପତି ( ପେସ୍କାର ) ଟ ୧୳
,, ଅଦ୍ୱୈତଚରଣ ମହାନ୍ତି ( ପୋ ଃ ସ ଃ ଲ ) ଟ ୵
,, ଅର୍ଜୁନଦାସ ଟ ୵
,, ପଣ୍ଡିତ ଗଦାଧର ତ୍ରିପାଠୀ କାବ୍ୟତୀର୍ଥ ଟ ୵ ୧
,, ,, ଗୋପୀନାଥ ମହାପାତ୍ର କାବ୍ୟତୀର୍ଥ ଟ ୵୧

| | |
|---|---|
| ଶ୍ରୀଯୁକ୍ତ ଜଗନ୍ନାଥ ପଢ ( ଭଙ୍ଗାରପୁର ) | ୨ ୵ ୯ |
| ,, ପଣ୍ଡିତ ଯଜ୍ଞେଶ୍ୱର ମିଶ୍ର କାବ୍ୟତୀର୍ଥ | ୫ ୵ ୯ |
| ,, ବଇଦର ପଢ | ୫ ୵ ୯ |
| ,, ଦାଶରଥି ମହାପାତ୍ର ( ହରଚଣ୍ଡୀସାହି ) | ୫ ୵ ୯ |
| ,, ଧ୍ରୁବମିଶ୍ର [ ଗୌଡ଼ବାଡ଼ ସାହି ] | ୨ ୵ |
| ,, ପଣ୍ଡା ନରସିଂହ ପ୍ରଧାନଙ୍କ | ୫ ୵ ୯ |
| ,, ବାସୁଦେବ ମହାପାତ୍ର | ୫ ୵ ୯ |
| ,, ପଣ୍ଡା ବଟକୃଷ୍ଣ ମହାପାତ୍ର | ୪ ୵ ୯ |
| ,, ବାମନଗୋଚ୍ଛିକାର ( ମଣିକର୍ଣ୍ଣିକାସାହି ) | ୪ ୵ ୯ |
| ,, ବନମାଳୀକର | ୫ ୵ ୯ |
| ,, ମହେଶ୍ୱର ତ୍ରିପାଠୀ | ୪ ୵ ୯ |
| ,, ମାର୍କଣ୍ଡେୟ ରଥ [ ବୀରନରସିଂହପୁର ] | ୫ ୵ ୯ |
| ,, ନୀଳମଣି ମହାନ୍ତି [ ଭଙ୍ଗାରପୁର ] | ୬ ୵ ୯ |
| ,, ବାଞ୍ଛାନିଧି ଦାଶ ଭୁବନେଶ୍ୱର | ୫ ୵ ୯ |
| ,, ସୋମନାଥ ପଣ୍ଡା ଦୋଳମଣ୍ଡପ ସାହି | ୫ ୵ ୯ |
| ,, ମହାଦେବଲାଞ୍ଛନ ମହାପାତ୍ର ଭମ୍ବା | ୫ ୵ ୯ |
| ,, ଗୋବିନ୍ଦ ଦାସ ଭୁମାସ୍ତ୍ରା | ୫ ୵ ୯ |
| ,, ନାରାୟଣ ମିଶ୍ର ପେଃ ସଃ ଇ | ୨ ୵ ୯ |
| ,, ଦଯାନିଧି ମିଶ୍ର , ବାରପୁର | ୫ ୵ ୯ |
| ,, ଗୋପବନ୍ଧୁ ଦାଶ ବିଃ ଏ | ୫ ୵ ୯ |
| ,, ପରମାନନ୍ଦ ମିଶ୍ର | ୫ ୵ ୯ |
| ,, ଲୋକନାଥ ରଥ | ୫ ୵ ୯ |
| ,, ଗୋପୀନାଥ ମିଶ୍ର ବାଲିସାହି | ୫ ୵ ୯ |

| | | |
|---|---|---|
| ପଣ୍ଡିତ ନୀଳକଣ୍ଠ ମିଶ୍ର | ଭୁବନେଶ୍ୱର | ୫ ୵ |
| ,, ନରସିଂହ ମିଶ୍ର | ନାରଜଦଙ୍କିପୁର | ଟ ୵ |
| ,, ଗୋପାଳଚନ୍ଦ୍ର ପ୍ରହରାଜ ବି, ଏଲ | | ଟ ୩ ୯ |
| ,, ଚିନ୍ତାମଣି ଦର ମାଷ୍ଟର | | ଟ ୩ ୯ |
| ,, ଜଗନ୍ନାଥ ପ୍ରହରାଜ | ହରଚଣ୍ଡୀସାହି | ଟ ୩ ୯ |
| ,, ଦସ୍ମାନନ୍ଦ ବସୁନ୍ଦରୁ ମହାପାତ୍ର | | ଟ ୩ ୯ |
| ,, ପଣ୍ଡା ସ୍ୱାମୀମହାପାତ୍ର | | ଟ ୩ ୯ |
| ,, ପଣ୍ଡିତ ମାଦ୍ରୋମିଶ୍ର | ହଦରଜ | ଟ ୩ ୯ |
| ,, ମଧୁସୂଦନ ପଣ୍ଡା | ମାଷ୍ଟର | ଟ ୩ ୯ |
| ,, ସୁନ୍ଦେଶ୍ୱର ପାଣିଗ୍ରାହୀ ମୋକ୍ତାର | | ଟ ୩ ୯ |
| ,, ଜନାର୍ଦ୍ଦନ ଉପାଧ୍ୟ | | ଟ ୩ |
| ,, ସଦାଶିବ ମିଶ୍ର | ରୂପାଦେଇ ପୁର | ଟ ୩ |
| ,, ମହନ୍ତ ଲକ୍ଷ୍ମୀନୃସିଂହ ରାମାନୁଜଦାସ | | ଟ ୩ ୯ |
| ,, ଧର୍ମ୍ମ ମହାପାତ୍ର | ପୁରୁଷର | ଟ ୩ ୯ |
| ,, ସୁଦର୍ଶନ ନନ୍ଦ | | ଟ ୩ । |
| ,, କପିଳେଶ୍ୱର ମିଶ୍ର | | ଟ ୩୨ ୯ |
| ,, ଜମ୍ବୁବନ୍ତ ଦାସ | ଦୋଳମଣ୍ଡପ ସାହି | ଟ ୩୨ |
| ,, ଦାମୋଦର ଦାସ ଦଳବେହେରା | | ଟ ୩୨ |
| ,, ରାମଚନ୍ଦ୍ର ତ୍ରିପାଠୀ ଭାନୁନଗୋ | | ଟ ୪ |
| ,, ମହନ୍ତ ନରହରି ମଠ | | ଟ ୪ |
| ,, ମଧୁସୂଦନ ଦାସ ଗୋସ୍ୱାମୀ | | ଟ ୪ ୯ |
| ,, ଗଣେଶମହାପାତ୍ର | | ଟ ୪ ୯ |
| ,, ହରେକୃଷ୍ଣ ପ୍ରଧାନ | | ଟ ୪ |
| ,, କାଶୀନାଥ ମହାପାତ୍ର | | ଟ ୪ ୯ |
| ,, ଗୋପୀନାଥ ମହାସୁଆର | | ଟ ୪ ୯ |
| ,, ଗୋପୀନାଥ ମିଶ୍ର | ବୃନ୍ଦାବନ ସାହି | ଟ ୪ |
| ,, ଦୁର୍ଗାଚରଣ ସାହୁ ଡାକ୍ତର ଭୁବନେଶ୍ୱର | | ଟ ୪ |

ଶ୍ରୀଯୁକ୍ତ ରଘୁନାଥ ସୋଲ୍ଲକାର ଟ୫

„ ରଜତଶେଖର ରାୟ ବି, ଏଲ ଟ୫

„ ଡା । ରାଧାକୃଷ୍ଣ ଦାସ ଜମିଦାର ଭଙ୍ଗାରପୁର ଟ୫

„ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ରମ୍ଭା ଟ୫

„ ଗୋପୀନାଥ ଦାସ ବି, ଏ ଟ୫

„ ରାମକୃଷ୍ଣ ମହାପାତ୍ର ପୋଃ ସ୍ଃ ଇଃ ଟ୬

„ ଡା । ନରହରି ଦାସ ଜମିଦାର ଭଙ୍ଗାରପୁର ଟ୬

„ ମାଧବଚନ୍ଦ୍ର ମିଶ୍ର ବି, ଏ ଟ୮

„ ଦାମୋଦର ରଥ ପୋଃ ସ୍ଃ ଇଃ ଟ୧୦

„ ମହନ୍ତ ରାଧାକୃଷ୍ଣ ଦାସ ଗୋସ୍ୱାମୀ ଟ୧୦

„ ପଣ୍ଡିତ ସଦାଶିବ ମିଶ୍ର କାବ୍ୟକଣ୍ଠ ଟ୧୦

„ ଗିରୀନ୍ଦ୍ରନାଥ ଘୋଷ ଟ୧୦

„ ରାମଚନ୍ଦ୍ର ଦାସ ଟ୧୨

„ ବକ୍ସି ଲୋକନାଥ ବିଦ୍ୟାଧର ମହାପାତ୍ର ଟ୧୨

„ ରଘୁନାଥ ମିଶ୍ର ଓକିଲ ଟ୧୫

„ ଡା । ବାଳକୃଷ୍ଣ ଦାସ ଜମିଦାର ଭଙ୍ଗାରପୁର ଟ୧୫

„ ମଧୁ ମିଶ୍ର ଟ୧୬

„ ଦିବ୍ୟସିଂହ ମିଶ୍ର ବି, ଏ ଟ୨୦

„ ବିଦ୍ୟାବିନୋଦ ଶ୍ରୀ ରଘୁନାଥ ଦେବବର୍ମା ରାଜା ଅଠଗଡ଼ ଟ୨୫

„ ଉତ୍କଳଗୌରବ ରାଜା ଶ୍ରୀ ହରିହର ମର୍ଦ୍ଦରାଜ ଦେଓ କଲ୍ଲିକୋଟ ଏବଂ ଅସ୍କାଦୁର୍ଗ ଟ୨୫

„ ଶ୍ରୀ ଶ୍ରୀ ଶ୍ରୀ ମହାରାଜା ମୁକୁନ୍ଦ ଦେବ ପୁରୀ ଟ୨୫

ଦାତାମାନଙ୍କ ନିକଟରେ ଏହି ପ୍ରାର୍ଥନା ଯେ ମୋହର ଶକ୍ତି ଅନୁସାରେ ଯଥା ସାଧ୍ୟ ଠିକ ହିସାବ ପ୍ରଦାନ କରି ଅଛୁ । ଦୈବାତ୍

ଯଦି କୌଣସି ଭ୍ରମ ଲକ୍ଷିତ ହୁଏ ଅବା କୌଣସି ବାକ୍ୟର ଭାବ ଓ ବାଳକର ପରିମାଣ ପ୍ରକାଶିତ ହୋଇ ନ ଥାଏ, ତାହାହେଲେ ପାଠକେ ଗ୍ରନ୍ଥର ଏହି ଭ୍ରମ ସଂଶୋଧନ କରିବେ ।

ସମ୍ପୂର୍ଣ୍ଣ ।